ସଟୀକ-

# କେଶବ କୋଇଲି ।



ଶ୍ରୀ ଦୂର୍ଯ୍ୟନାରାୟଣ ମଣିପାତ୍ର

ଓ

ଶ୍ରୀ ନାରାୟଣ ଶିରୋମଣି ।

**SATIKA-**

# KESHAVA-KOYILI.

*Compiled and Published*

*by*

**Sriman S. M. Patra, B.A.L.T.**
**Deputy Inspector of Schools,**
**Berhampur Range,**

*and*

**Samanta Narayan Mahapatra**
**Kavyatirtha, Siromani, Head**
**Sanskrit Pandit Surangi**
**High School, Iohhapur,**
**Ganjam.**

---

SECOND EDITION.

---

Printed by A. C. Chakraverty.
Orissa Printing Works, Puri. 1926.

Price One anna. ମୂଲ୍ୟ ଠ ୦/ ପାଇ ।

# ମୁଖବନ୍ଧ ।

—※—

ଏହି କୋଇଲିକୁ "ଗଞ୍ଜାମ ଜିଲ୍ଲାର ଶିକ୍ଷାସଭା" ନିଜ ପ୍ରାଥ-ମିକ ଓଡ଼ିଆ ବିଦ୍ୟାଳୟମାନଙ୍କରେ ପାଠ୍ୟ କରି ଅଛନ୍ତି । ଦେଶୀୟ ପ୍ରାଚୀନ କବିମାନଙ୍କ ଲେଖାରୁ ଏପରି ଶିକ୍ଷଣୀୟ ବିଷୟଗୁଡ଼ିକ ବାଛିଗୁଛି ପାଠ୍ୟରୂପେ ଅନୁମୋଦନ କରିବା ଦ୍ୱାରା ସଭ୍ୟମାନେ ଧନ୍ୟବାଦାର୍ହ ।

କେଶବଙ୍କ ବିଷୟ କୋଇଲିକୁ କୁହାଯାଇଥିବାରୁ ପୁସ୍ତକର ନାମ କେଶବ କୋଇଲି । ଏହା ଓଡ଼ିଆରେ ନୂଆ ନୁହେଁ । ସଂସ୍କୃତ-ଭାଷାର ହଂସଦୂତ ମେଘଦୂତ ଓ କୋକିଳଦୂତ ଏହାର ପ୍ରଧାନ ସାକ୍ଷୀ । ଏହି "କେଶବ କୋଇଲି" ମହାଭାରତ ଓ ଭାଗବତର ବିଷୟ ନେଇ ଲିଖିତ । ମାତାର ପୋଷ୍ୟପୁତ୍ର ପ୍ରତି କିପରି ଅନ୍ତ-ରଙ୍ଗ ସ୍ନେହ ଓ କ୍ଷଣିକ ଅନ୍ତରରେ କିପରି ବ୍ୟାକୁଳତା ତାହାର ଜ୍ୱଳନ୍ତ ଆଦର୍ଶ କବି ଏହି ପଦ୍ୟାବଳୀରେ ଦର୍ଶାଇ ଅଛନ୍ତି । ପୁଣି ସରଳଲଳିତ ଭାଷାରେ କ ଠାରୁ କ୍ଷ ପର୍ଯ୍ୟନ୍ତ ଚୌତିଶଗୋଟି ପଦ୍ୟରେ ନିଜର ମନୋଭାବ ଚିତ୍ରିତ କରି ଅଛନ୍ତି । ପ୍ରତ୍ୟେକ ପଦ୍ୟର ପ୍ରାରମ୍ଭ ଓ ପ୍ରାନ୍ତରେ କୋଇଲି ପଦର ସମ୍ପୃକ୍ତ ହୋଇ-ଅଛି । ପ୍ରତି ପଦ୍ୟରେ ଅନ୍ତ୍ୟାନୁପ୍ରାସ ଓ ଆଦ୍ୟାନୁପ୍ରାସର ଅଭାବ ନାହିଁ । କବି ମାତାଙ୍କ ପଠିତ ଅର୍ଦ୍ଧଶତାବ୍ଦୀ ପୂର୍ବର ପୁରୁଣାତାଳ-ପତ୍ର ପୋଥିରୁ ନିଃସନ୍ଦେହରେ ଜଣା ଯାଏ ଯେ ଘୋଷାପଦ ଛଡ଼ା ଧାଡ଼ିଗୁଡ଼ିକ ୧୪ ଅକ୍ଷରିଆ, କିନ୍ତୁ କେତେକ ପୁସ୍ତକରେ ଏହି ଅକ୍ଷର ସଂଖ୍ୟାର ନିୟମ ନାହିଁ । କିବା ଙ, ଞ, ଡ଼, ଣ, ଯ, ଷ,

ଷ୍ଟ ପ୍ରଭୃତି ପଦ୍ୟରେ ବର୍ଣ୍ଣମାଳା କ୍ରମର ପ୍ରାୟ ବ୍ୟତିକ୍ରମ କରି ଅଛନ୍ତି । ମାତ୍ର ବୁଝିବାକୁ ଗଲେ ଉପେନ୍ଦ୍ରଭଞ୍ଜପ୍ରଭୃତି ବଡ଼ବଡ଼ କବିମାନଙ୍କର ସ୍ଥାନେ ସ୍ଥାନେ ଏପରିବ୍ୟତିକ୍ରମ ଦେଖାଯାଇଥାଏ

ମୁଦ୍ରିତ ପୁସ୍ତକମାନଙ୍କରେ ଏହା, ମାର୍ଜିତ ପଦ୍ୟ ଧରଣରେ ଦେଖା ଯାଉ ନଥିବାରୁ ଓ ପୌରାଣିକ ବିଷୟ ବିଜଡିତ ଏହା ଉପରେ ଟିକିଏ ହେଲେ ଟୀକାଦି ଟିପ୍ପଣୀ ମିଳୁ ନଥିବାରୁ ସୁବିଧା ପାଇଁ କେତେକ ବିଶିଷ୍ଟ ଭଦ୍ରଲୋକଙ୍କ ଅନୁରୋଧରେ ଏହି ଟୀକା ଦିଆଗଲା । ଏଥିରେ ସ୍ଥାନେ ସ୍ଥାନେ ଶବ୍ଦାର୍ଥ, ତାତ୍ପର୍ଯ୍ୟ, ଭାବାର୍ଥ ଅନ୍ୱୟ ପୌରାଣିକୀବାର୍ତ୍ତା, ବ୍ୟାକରଣ ପ୍ରଭୃତି ବିଷୟମାନ ସ୍ଥାନ ପାଇଅଛି । ଏହାର ସରଳାର୍ଥ ଛାଡ଼ି ଜଟିଳ ଆଧ୍ୟାତ୍ମିକାର୍ଥ ଉପରେ ଆଦୌ ଦୃଷ୍ଟି ଦିଆହୋଇ ନାହିଁ । ଅଧିକନ୍ତୁ ମଧ୍ୟ ଅନପେକ୍ଷିତ ଓ ଅବାନ୍ତର ବିଷୟମାନଙ୍କର ଆଲୋଚନା ବର୍ଜିତ ହୋଇଅଛି । ଅନ୍ୟାନ୍ୟ ପୁସ୍ତକର ପାଠାନ୍ତର ମଧ୍ୟ ଦେଖାଇ ଦିଆ ଯାଇଅଛି ।

ଏକେତ ଭାରତୀୟ ପୁରାତନ କବିବରମାନଙ୍କର ପରିଚୟ ମିଳିବା ଦୁସ୍ତର, ତହିଁରେ ପୁରୁଣା ଓଡ଼ିଆ କବିଙ୍କ ଘଟନା ପାଇବା କେତେ ଦୂର ସମ୍ଭବ ପାଠକମାନେ କଳନା କରି ପାରୁ-ଥିବେ ତଥାପି ଏହା ଅତି ପ୍ରାଚୀନ କବିତା ବୋଲି ସର୍ବଶେଷରେ କବି "ଭଣେ ମାରକଣ୍ଡ ଲେଖ କୋଇଲି" ଏପରି ଟିକିଏ କହିଦେଇ ଥିବାରୁ କିଞ୍ଚିତ୍ପରିଚୟ ମିଳେ । ଆଧୁନିକ କବିତା ହୋଇଥିଲେ ତାହା ମଧ୍ୟ ମିଳି ଥାଆନ୍ତା କି ନା ସନ୍ଦେହ । ଏହାଙ୍କରଚିତ କେଶବ କୋଇଲି ସମଗ୍ର ଉତ୍କଳଭୂମି-ପ୍ରଦେଶରେ ସୁପରିଚିତ । ବାଳକ-ବାଳିକାମାନେ ବର୍ଣ୍ଣମାଳା ଶିକ୍ଷା କଲାପରେ ଏହି ଖଣ୍ଡ କାବ୍ୟଟି ସାଧାରଣତଃ ପଢ଼ିଥାନ୍ତି । କେହି କେହି ଅନୁମାନ

କରନ୍ତି ଯେ ଏହା ପୁରାତନ ନୁହେ । କିନ୍ତୁ ଚଟଶାଳୀ ମାନଙ୍କରେ ବହୁକାଳରୁ ବାଳକ ବାଳିକାମାନଙ୍କ ଦ୍ୱାରା ବର୍ଣ୍ଣମାଳା ଶିକ୍ଷା ପରେ ଏହା ବ୍ୟବହୃତ ହୋଇ ଆସୁଥିବାରୁ ବୋଧହୁଏ ଏହା ଅବଶ୍ୟ ଗୋଟିଏ ଅତି ପୁରାତନ କବିତାଅଟେ । ପୁସ୍ତକଟିର ଭାଷା ଓ ଭାବ ସରଳ ବୋଲି ତାହା ସୁକୁମାରମତି ବାଳକ ମାନଙ୍କୁ ପଢିବାକୁ ଦିଆଯାଏ । ଉକ୍ତ ପୁସ୍ତକରେ କେତେ ଗୁଡ଼ିଏ ପୁରାତନ ଶବ୍ଦର ବ୍ୟବହାରରୁ ତାହା ଗୋଟିଏ ପୁରାତନ କବିଙ୍କ ଦ୍ୱାରା ରଚିତ ହୋଇଥିବାର ଜଣାଯାଏ । ୧୩ ଓ ୨୯ ଶ ପଦ୍ୟରେ ଯଥାକ୍ରମେ ବର୍ଗ୍ୟ ଓ ଅନ୍ତସ୍ଥ ବର ଯଥାଯଥ ପ୍ରୟୋଗରୁ କବିଙ୍କର ବ୍ୟାକରଣ ଚର୍ଚ୍ଚାରେ, ଭାଷାର ଶୈଳୀରୁ କାବ୍ୟ ଚର୍ଚ୍ଚାରେ, ମହାଭାରତାଦି ବିଷୟ ହେତୁ ପୁରାଣଚର୍ଚ୍ଚାରେ ମଧ୍ୟ ସମ୍ୟକ୍ ପରିଚୟ ମିଳେ । ପୁସ୍ତକରେ ସୁନ୍ଦର ବାତ୍ସଲ୍ୟଭାବ, ମଧୁର ରୂପେ କରୁଣରସରେ ବର୍ଣ୍ଣିତ ହୋଇଅଛି । ବାଲ୍ୟରେ ଜନ୍ମମାତ୍ରୁ ଆ-ଅ-ଆ-ବୋଲି ଡାକି ପିଲାମାନଙ୍କୁ ପ୍ରବୋଧ କରିବା ପ୍ରଥା ମଧ୍ୟ କବି ଉଲ୍ଲେଖ କରିଅଛନ୍ତି । କେତେକ ସାମାନ୍ୟ ଘରୋଇ-ବିଷୟର ଉଲ୍ଲେଖଦ୍ୱାରା କବିତାଟି ଅତି ଚିତ୍ତାକର୍ଷକ ହୋଇଅଛି । କବିଙ୍କର ପୂର୍ଣ୍ଣନାମ ମାର୍କଣ୍ଡଦାସ । ସେ ଜାତିରେ ବ୍ରାହ୍ମଣ ଓ ବଡ଼ ପଣ୍ଡିତ ଥିଲେ । ଆଦିମ ଓଡ଼ିଆ କବି-ଯୁଗରେ (୧୫୦୦ ଖ୍ରିଷ୍ଟାବ୍ଦ ମଧ୍ୟରେ) ଜନ୍ମଗ୍ରହଣ କରିଥିଲେ । ଜ୍ଞାନୋଦୟ କୋଇଲି ମଧ୍ୟ ଏହାଙ୍କ ଦ୍ୱାରା ବିରଚିତ ବୋଲି ଜଣାଯାଏ ।

ପ୍ରିୟ ଶିକ୍ଷକବର୍ଗ ! -ଛାତ୍ରମାନଙ୍କୁ ବୋଲାଇଲା ବେଳେ ଏପରି ଚେଷ୍ଟା କରାଇ ଦେଇଥିବେ ଯେ ସେମାନେ ହାବ ଭାବ ଓ ଧୀର ଗମ୍ଭୀର ସ୍ୱରର ଝଙ୍କାରେ ସବୁ ନିଜେ ନିଜେ ଯେପରି ହୃଦୟଙ୍ଗମ

କର ପାରୁଥିବେ । ସୁକୁମାରମତି ଶିଶୁମାନଙ୍କୁ ଅନ୍ୱୟ, ଶବ୍ଦାର୍ଥ, ବ୍ୟାକରଣାଧୀନ ବିଷୟ ଗୁଡ଼ିକ ବୁଝାଇବାରେ ପ୍ରୟାସ କରିବେ-ନାହିଁ । ବାରମ୍ବାର ଆବୃତ୍ତି ଦ୍ୱାରାହିଁ କଣ୍ଠସ୍ଥ କରାଉଥିବେ । ଏଥିରୁ ଗୋଟିଏ ଗୋଟିଏ କାହାଣୀ ଉଦ୍ଧାର କରି କଥା ଶୁଣାଇବା ଛଳରେ ବତାଇ ପାରନ୍ତି । ତଦ୍ଦ୍ୱାରା ସ୍ମରଣଶକ୍ତିର ବିକାଶ ସଙ୍ଗେ ସଙ୍ଗେ ଅନୁଷଙ୍ଗିକ ପୌରାଣିକୀ କଥାଗୁଡ଼ିକ କଣ୍ଠାଗ୍ରରେ ବାଳକର ଚିରକାଳ ରହି ପାରିବ । ଇତି ।

## ଦ୍ୱିତୀୟ ସଂସ୍କରଣ ।

ପ୍ରଥମ ସଂସ୍କରଣଟି ସରିଯିବାରୁ ପାରଳା, ମଞ୍ଜୁଷା, ଉଦ୍ୟାନ, ଘୁମୁସର ପ୍ରଭୃତି ସ୍ଥାନର ଶିକ୍ଷକମାନେ ଅଠମାସ ହେଲା ଛପାଇବାପାଇଁ ବାରମ୍ବାର ଲେଖୁଥିଲେ । ସେମାନଙ୍କ ଅନୁରୋଧରେ ଏବେ ଦୁଇହଜାର ପୁସ୍ତକ ଛପା ହୋଇଅଛି । ଏଥର କେତେକ ଯାଗାରେ ପରିବର୍ତ୍ତିତ ଓ ବହୁଳ ଭାବରେ ପରିବର୍ଦ୍ଧିତ ହୋଇଅଛି । ଉପର ମଲାଟ ଓ ଭିତର କାଗଜକୁ ଆଗ ଅପେକ୍ଷା ଅଧିକ ସୁନ୍ଦର କରି ଯୋଗାଇବା ପାଇଁ ଦୃଷ୍ଟି ଦିଆ ଯାଇଅଛି । ତଥାପି ଓଡ଼ିଆଭାଇଙ୍କ ସୁବିଧା ନିମନ୍ତେ ଆଗ ଅପେକ୍ଷା ମୂଲ୍ୟ ଊଣା କରି ଯାଇଅଛି ।

ପ୍ରକାଶକ —

ଶ୍ରୀ ସୂର୍ଯ୍ୟନାରାୟଣ ମହିପାତ୍ର, ବ୍ରହ୍ମପୁର ଗଞ୍ଜାମ } ଶ୍ରୀ ନାରାୟଣ ଶିରୋମଣି ଶାରଦବେହେରମ୍ପୁର ପ୍ରେସ ।

— — ○ ——

## ଷଷ୍ଠାଙ୍କ—

# କେଶବ କୋଇଲି ।

କୋଇଲି ଲୋ କେଶବ ଯେ ମଥୁରାକୁ ଗଲା । *
କାହା ବୋଲେ ଗଲା ପୁତ୍ର ବାହୁଡ଼ି ନଇଲା ।
ଲୋ, କୋଇଲି । ୧ ।

ଭଣ ମା ଦୁର୍ଗତି—ନାଚିନ ହେ ଦୁର୍ବେ ।
ଜ୍ଞାସ୍ୱଗୀ ଶୀବାବାର ଏଡ଼ି ଦିଲ୍ଲେ ।

ନନ୍ଦପତ୍ନୀ ଯଶୋଦା, ନିଜ ପୁତ୍ରରେ ପୁଣ୍ଡ଼ରୀକ ନ ଦେଖିବାରୁ ଦୁଃଖରେ କୋଇଲିକୁ ସମ୍ବୋଧନ କରି ଏହା କହୁ ଅଛନ୍ତି । ଦୁଃଖୀ ଲୋକ, ଅନ୍ୟ ଅଟେରେ ନିଜର ଦୁଃଖ କହିଲେ ଚିତ୍ତରେ ସାନ୍ତ୍ୱନା ପାଇ ଦୁଃଖ ଊଣା ହେବ ବୋଲି ବୋଧ କରେ । ଏହି ଅବସ୍ଥାରେ ଶୁଣାଇବା ଲୋକର ସମସ୍ତ ବିଶେଷରେ ଚେତନାଚେତନ ବସ୍ତୁର ମଧ୍ୟ ଉପେ ନାହିଁ । କେଶବ ଉକ୍ତ—ସେ କୋଇଲି ! ମୋର ( ପୁତ୍ର କେଶବ ) ପୁତ୍ର ଶ୍ରୀକୃଷ୍ଣ, ମଥୁରାକୁ ଯାଇ କାହା କଥାରେ ଭଲ୍ଲ ଗଲା ଏ ପର୍ଯ୍ୟନ୍ତ ( ବାହୁଡ଼ି ନଇଲା ) ଫେରିଲା ନାହିଁ । ପୌରାଣିକ ବାର୍ତ୍ତା—ଦ୍ୱାପର ଯୁଗର ଶେଷକୁ ବସୁଦେବଙ୍କ ଔରସରେ ଦେବକୀଙ୍କର ଅଷ୍ଟମ ଗର୍ଭରୁ ଶ୍ରୀକୃଷ୍ଣ ଜାତ ହୋଇଥିଲେ । ଶ୍ରୀକୃଷ୍ଣଙ୍କ ମାମୁ କଂସ, ବସୁଦେବଙ୍କର ସନ୍ତାନମାନଙ୍କୁ ଗୋଟି ଗୋଟି କରି ପ୍ରାଣରେ ମାରି ପକାଉଥିଲେ ଏବଂ ଦେବକୀଙ୍କ ଗର୍ଭରୁ ଜନ୍ମ ସମ୍ବାଦ ପାଇବା ପାଇଁ ଅନେକ ଗୁପ୍ତଚର ଲଗାଇ ଥିଲେ । ପ୍ରଭୁଙ୍କ କୃପାରୁ ବସୁଦେବ, ଅତଏବ ସୁବିଧା ପାଇ ଜାତ ହେବା ମାତ୍ରେ ସ୍ୱପୁତ୍ର ଶ୍ରୀକୃଷ୍ଣଙ୍କୁ ଯଶୋଦାଙ୍କ ପାଖରେ ରଖାଇ ଦେଇ ତାହାଙ୍କ ନବ ଜାତ କନ୍ୟାଙ୍କୁ

୧—ପାଠାନ୍ତର—କୋଇଲି କେଶବ ଯେ ମଥୁରାକୁ ଗଲା । *

କୋଇଲି ଲୋ ଖଣ୍ଡ କ୍ଷୀର ଦେବ ମୁଁ କାହାକୁ ।
ଖାଇବାର ପ୍ରଭୁ ଗଲେ ମଥୁରା ପୁରକୁ ॥
ଲୋ, କୋଇଲି । ୨ ।

କୋଇଲି ଲୋ, ଗଲା ପ୍ରଭୁ ବାହୁଡ଼ି ନଇଲା ।
ଗହନ ବୃନ୍ଦାବନ ଶୋଭା ନ ପାଇଲା ॥
ଲୋ, କୋଇଲି । ୩ ।

---

ଦେବକୀଙ୍କ ନିକଟରେ ନେଇ ରଖିଲେ । କଂସ, ଦେବକୀଙ୍କ କନ୍ୟା ଜନ୍ମ ସମ୍ବାଦ ପାଇ ପୂର୍ବ ପରି ଏହି କନ୍ୟାଙ୍କୁ ମଧ୍ୟ ହତ୍ୟା କଲେ । ଯଶୋଦା, ପ୍ରସବ ଯନ୍ତ୍ରଣା ପରେ ଚେତନା ପାଇ ଶ୍ରୀକୃଷ୍ଣଙ୍କୁ ନିଜ ପେଟର ପୁତ୍ର ବୋଲି ମନେ କରିଥିଲେ । ପରେ ପାଳିତ ପୁତ୍ର ବୋଲି ଜାଣି ସୁଦ୍ଧା ସ୍ନେହରେ ତିଳ ମାତ୍ର ଫର୍କ କରି ନାହାନ୍ତି । ୧ ।

ଖଣ୍ଡ ଇତ୍ୟାଦି—ମୋର ଖାଇବାର ପୁତ୍ର ଶ୍ରୀକୃଷ୍ଣ, ମଥୁରା ପୁରକୁ ବାହାରି ଗଲେ । ମୁଁ (ଖଣ୍ଡ କ୍ଷୀର) ଖଣ୍ଡ, ଚିନିଠାରୁ ପତଳା ଓ ଧବଳ ଗୁଡ଼ର ସାରାଂଶ ଯାହାକି ପୁରୀରେ ପ୍ରଚୁର ମିଳେ । ତାହାକୁ ଦୁଗ୍ଧରେ ଗୋଳାଇ ଆଉ କାହାକୁ ଖାଇବାକୁ ଦେବି ? ପୌରାଣିକୀ ବାର୍ତ୍ତା—ଅଯୋଧ୍ୟା ପ୍ରଦେଶର ଅନ୍ତର୍ଗତ ମଥୁରା ଗୋଟିଏ ପ୍ରସିଦ୍ଧ ନଗର । ଶତ୍ରୁଘ୍ନ, ମଧୁ ନାମକ ଅସୁରକୁ ଏହି ସ୍ଥାନରେ ମାରିଥିଲେ ବୋଲି ଏହାର ନାମ ମଥୁରା ହୋଇଅଛି । ୨ ।

ଗହନ ଇତ୍ୟାଦି । ଶ୍ରୀକୃଷ୍ଣ, ମଥୁରା ପୁରକୁ ଏ ସ୍ଥାନରୁ ବିଜେ କରିବାରୁ ତାହାଙ୍କ ବିରହରେ ( ଗହନ ତ ବୃନ୍ଦାବନ ) ଯାହା ନିକୁଞ୍ଜ ମଣ୍ଡଳ ଏହି ବୃନ୍ଦାବନର ଶୋଭା ଆଉ ପୂର୍ବ ପରି ରହିଲା ନାହିଁ । ପୌରାଣିକୀ ବାର୍ତ୍ତା—ବୃନ୍ଦା, ଶ୍ରୀକୃଷ୍ଣଙ୍କୁ ପତି ରୂପରେ ପାଇବାକୁ ଏହି ବନରେ ତପସ୍ୟା କରିଥିବାରୁ ଏହାର ନାମ ବୃନ୍ଦା-ବନ ହୋଇଅଛି । ଆଗେ ଏହା ଅଧିକ ବଣ ଥିଲା । ଧୀରେ ଧୀରେ ଲୋକ ବସତିରେ ପୂର୍ଣ୍ଣ ହେଉଅଛି । ଏହା ମଥୁରାପୁରର ଅତି ନିକଟ । ୩ ।

କୋଇଲି ଲୋ, ଘର ମୋର ନ ମଣନ୍ତି ନନ୍ଦ ।

ଘଟନ ନ ଦିଶେ ପୁର ନ ଥିଲେ ଗୋବିନ୍ଦ ॥

ଲୋ, କୋଇଲି । ୪ ।

କୋଇଲି ଲୋ, ନନ୍ଦ ଦେହ ପାଷାଣେ ଗଢିଲା ।

ନିଷ୍ଠୁରେ ଅକ୍ରୂର ନେଇ ରଥେ ବସାଇଲା ॥

ଲୋ, କୋଇଲି । ୫ ।

କୋଇଲି ଲୋ, ଚତୁର୍ଥୀରେ କଟୀର ମେଖଳା ।

ଚଟଚ ହୋଇଲେ ଶୁଣି ଗୋପପୁର ବାଳୀ ॥

ଲୋ, କୋଇଲି । ୬ ।

କୋଇଲି ଲୋ, ଛାଟକ ମୁଁ ମାଇଲି ପୂରୁବେ ।

ଛାଡ଼ି ଅବା ଗଲେ କୃଷ୍ଣ ସେହୁ ପରାଭବେ ॥

ଲୋ, କୋଇଲି । ୭ ।

---

ଘର ଇତି । (ଗୋବିନ୍ଦ) ଶ୍ରୀକୃଷ୍ଣ, ନ ଥିବାରୁ ଏହୁ (ପୁର) ନଗର (ଘଟନ) ସୁନ୍ଦର ଦିଶୁ ନାହିଁ ଏବଂ ନନ୍ଦ ପିତା, ମୋର ଘରକୁ ଘର ଅଗପର ଭଲ ପାଉ- ନାହାନ୍ତି "ଅପୁତ୍ରସ୍ୟ ଗୃହଂ ଶୂନ୍ୟଂ" ଏହି ଭାବ । ୪ ।

ନନ୍ଦ ଇତି । ବିଧାତା, ନନ୍ଦଙ୍କ ଦେହକୁ (ପାଷାଣ) ପଥରସ୍ୱରୂପ କରି ଦେଇ ଥିଲା । ତେଣୁ ସେ କଷ୍ଟ ବାଧା ହେଇ ପାରିଲେ ନାହିଁ । ଅକ୍ରୂର, ନିଷ୍ଠୁର ଚିତ୍ତ ଶ୍ରୀକୃଷ୍ଣଙ୍କୁ ରଥରେ ବସାଇ ମଥୁରାକୁ ନେଇ ଗଲା । ୫ ।

ଚତୁର୍ଥୀ ଇତି । ଶ୍ରୀକୃଷ୍ଣ, ଗଲା ବେଳେ ତାଙ୍କ (କଟୀର ମେଖଳା) ଅଣ୍ଟାର ଚନ୍ଦ୍ରହାରା (ଚତୁର୍ଥୀରେ) ରୁଣ୍ ଝୁଣ୍ ବାଜୁଥାଏ । ତାହା ଶୁଣି କରି (ଗୋପପୁର- ବାଳୀ) ବୃନ୍ଦାବନର ଯୁବତୀମାନେ (ଚଟଚ ହୋଇଲେ) ଚମକିତ ହେଲେ । ୬ ।

ଛାଟକ ଇତି । ଅଗେ, ଶ୍ରୀକୃଷ୍ଣଙ୍କୁ ପିଲା ବେଳେ ଶାସନା ଛଳରେ ମୁଁ ବାନ୍ଧିଥିଲି (ସେହୁ ପରାଭବରେ) ସେହି ଦୁଃଖରେ ମୋତେ ଛାଡ଼ି କରି ପଳାଇ ଗଲେ କି ? । ୭ ।

କୋଇଲି ଲୋ, ବ୍ରଜେ ଦୂତ ଅଇଲା ଅକ୍ରୁର ।
ଯାତ୍ରା ବୋଲି ଭଣ୍ଡି ନେଲା ବସାଇ ରଥର ॥
ଲୋ, କୋଇଲି । ୮ ।

କୋଇଲି ଲୋ, ଝୁରୁ ଝୁରୁ ଲୁହ ନ ରହଇ ।
ଝଗଡ଼ା ସାରଣି କୃଷ୍ଣ ମଥୁରା ରହଇ ॥
ଲୋ, କୋଇଲି । ୯ ।

କୋଇଲି ଲୋ, ନିଶାକାଳେ ଦହ ମାଗେ ବୃନ୍ଦ ।
ନନ୍ଦନ ହେବ;ଅ ତାଙ୍କୁ ଖାନ୍ତୁ ଥାନ୍ତି ନନ୍ଦ ॥
ଲୋ, କୋଇଲି । ୧୦ ।

---

ବ୍ରଜେ ଉତ । (ଅକ୍ରୁର) କୃଷ୍ଣଙ୍କ ଦୂତେଇ, (ବ୍ରଜେ) ଗୋପପୁରରେ [ଅଇଲ] ଦୂତ ସ୍ୱରୂପରେ ଅସିଥିଲ । (ବସାଇରଥର) ରଥରେ ବସାଇ (ଯାତ୍ରାବୋଲି) ଧନୁର୍ଯାଗାଦି ଦେଖି ଉତ୍ସବର ନାମ ଦେଇ ଶ୍ରୀକୃଷ୍ଣଙ୍କୁ [ଭଣ୍ଡିନେଲା] ଠକି ବହି ନେଇଗଲା ॥ ୮ ॥

ଝୁରୁ ଉତ । (ଝୁରୁ ଝୁରୁ) ପୂର୍ବର କଥା ମନେ ପକାଇ କାନ୍ଦୁ କାନ୍ଦୁ ମୋର ଆଖିରୁ ଲୋତକ ବନ୍ଦ ହେବାକୁ ନାହିଁ । (କୃଷ୍ଣ ଝଗଡ଼ା ସାରଣି) ସେ ସବୁ ଗୋଳମାଳ ଦୂର କରି ଦେଇ ମଥୁରାରେ ଯାଇ ରହିଲେ । ଝଗଡ଼ା ହିଂସା ଶବ୍ଦ ॥ ୯ ॥

କୋଷା ଉତ । (ହରି) ଶ୍ରୀକୃଷ୍ଣ (ନିଶାକାଳେ) ରାତ୍ରିରେ (ବୃନ୍ଦମାନେ) ଚନ୍ଦ୍ରଙ୍କୁ ଦେଖି [ନନ୍ଦ] କୃଷ୍ଣଙ୍କ ପିତା [ନନ୍ଦନ ହେବ] ଉପରକୁ ଚାହିଁ [ତାଙ୍କୁ ଅ] ଚନ୍ଦ୍ରଙ୍କୁ ଅ ଅ ବୋଲି (ଖାଉଥାନ୍ତି) ଡାକୁଥାନ୍ତି । ଉଦାହରଣ-ଯଥା ନନ୍ଦନମ୍ ସରସ ଶଶୀ, ମୋ ଚାନ୍ଦ, ହାତରେ ପଡ଼ିବ ସତି ॥ ୧୦ ॥

---

୮—ପାଠାନ୍ତର—କୋଇଲି ଲୋ ବ୍ରଜପୁରେ ଅଇଲା ଅକ୍ରୁର ।

କୋଇଲି ଲୋ, ଠହ ଠହ ହସୁଥାନ୍ତି ଲୋକେ ।
ଠଳ ଠଳ ହୋଇ ଥାନ୍ତି ଝୁଲିବାର ବେଳେ ।
ଲୋ, କୋଇଲି । ୧୧ ।

କୋଇଲି ଲୋ, ଡଣ୍ଡ ଯେ ସୁ—ନ୍ଦର ବେଣୁ ପୋଏ ।
ଡଣ୍ଡ ଭଣ୍ଡି ଗଲେ କୃଷ୍ଣ ନଇଲେ ବେଢ଼ାଏ ।
ଲୋ, କୋଇଲି । ୧୨ ।

କୋଇଲି ଲୋ, ଢାବଳେ ଖୁ—ସଇ ଯେଉଁ ଶାଇ ।
ଢାଳ ଉହୁ ଶୁଖ ପ୍ରାପ୍ତେ ଭାଷୁଥାନ୍ତି ହଇ ।
ଲୋ, କୋଇଲି । ୧୩ ।

---

ଠହ ଠହ ଅର୍ଥ । [ଢଳ ଢଳ ହୋଇଥାନ୍ତି] ଅଥବା ଦୋହଲି ଥାଆନ୍ତି । ପିଲେ ଝୋଳିରେ ଝୁଲିବା ବେଳେ—"ଝୁଲଣ୍ଡାଠ ଝୁଲ୍ ବା ପାଣି ଖାଇ ଫୁଲ" ବୋଲି କେହି କେହି ଗୀତ ଗାଇ ଥାଆନ୍ତି ।୧୧।

ଡଣ୍ଡ ଅର୍ଥ । [ଡଣ୍ଡ] ଅର୍ଥାତ୍ ଗଠନରେ ବର୍ତ୍ତୁଳାକାର [ବେଣୁପୋଏ] ବୃକ୍ଷ ର ଚାରି ବଡ଼ ଛୁଇ ବଳୟମ ଏପରି ଭୂଡେଁ [ବେଢ଼ାଏ] ଅଟେ । ୧୨ ।

ଢାବଳେ ଅର୍ଥ । [ଯେଉଁ] ଯେପରି, ଯେଉଁ ଯେଉଁ ପ୍ରକାର ଶବ୍ଦଗୁଡ଼ିକ କେବଳ ଗୀତରେ ବ୍ୟବହାର କରଯାଏ । [ହଇ] ତଥା କହେ [ଢାଳର ଶୁଖ ପ୍ରାପ୍ତେ] ଢାଳର ଶୋଷ ବଢ଼ାଇଥିବା ପ୍ରଧାନ ଶୁଖପରି, ଶାଇକୁ ଏହିପରି କହି ବୋଲି ଗୋଟିଏ କଥା ବୋଧହୁଏ କି ଯେପରି ସେହି ଶବ୍ଦକୁ ଅନୁକରଣ କରି ଭାବେ; ଶିଶୁ ଶ୍ରୀକୃଷ୍ଣ, ପିତା ମାତାଙ୍କ କହିବା କଥା ଅନୁକରଣ କରି ସେହିପରି ଉଚ୍ଚାରଣ କରି ଥାଆନ୍ତି । ଶୁଆଙ୍କର ଢାଳରେ ବସିଥିବା ବେଳେ ମନକୁ ଯେପରି ଯାହାପାଏ ତାହା କହୁଥାଏ । ଶିଶୁ କୃଷ୍ଣ ସେହିପରି ଜନ୍ମାକାରେ ନାନା କଥା କହି କହି ବହୁ ଆନନ୍ଦ ଅନୁଭବ କରୁ ଥାଆନ୍ତି । ୧୩ ।

କୋଇଲି ଲୋ, ଢଳ ଢଳ ନୟନେ କଜ୍ଜ୍ୱଳ ।
ଟଳଇ ନାସାର ମଣି ମୁକୁତାର ଫଳ ।
ଲୋ, କୋଇଲି । ୧୪ ।

କୋଇଲି ଲୋ, ଅନେକ ଦୁଷ୍ଟ—ହିଂସା ସୃଜି କଂସ ।
ଅଣହେଳା କରିଣ ଆ—ପଣେ ଗଲେ ନାଶ ।
ଲୋ, କୋଇଲି । ୧୫ ।

କୋଇଲି ଲୋ, ଚନ୍ଦ୍ରେ ଚା ଳିପଇଁ କୁଙ୍କୁମ ।
ଚିନ୍ତୟ ଖେଳାଉ ଥାନ୍ତି ଭାଇ ବଳରାମ ॥
ଲୋ, କୋଇଲି । ୧୬ ।

କୋଇଲି ଲୋ, ଅନ ଭାଙ୍ଗି କ୍ଷୀର ପାନ ଦେଲି ।
ଅବର କାଳକୁ ଦୂରୁ ଦେଖି ନ ପାରିଲି ।
ଲୋ, କୋଇଲି । ୧୭ ।

---

ଢଳ ଢଳ ଇତି । [ଢଳଢଳ] ତରଳ, ଆଖିରେ କଜ୍ଜ୍ୱଳ ଶୋଭା ପାଉଥାଏ । (ମୁକୁତାର ଫଳ) ଫଳପରି ଗୋଲ ମୋତି (ନାସାର ମଣି) ନାସାମଣି ରୂପରେ ଟଳଇ ଦୋହଲୁଥାଏ । ଅଗରୁ ଯଶୋଦାଙ୍କର ଅପତ୍ୟହାନି ହେଉଥିବାରୁ କୃଷ୍ଣଙ୍କ ନାକଫୋଡ଼ାଇ ମୁକ୍ତାର ଦଣ୍ଡୀ ଦେଇ ଥାଆନ୍ତି । ୧୪ ।

ଅନେକ ଇତି । (ଦୁଷ୍ଟ) ଖଳ [ହିଂସିର] ହିଂସାକର କୃଷ୍ଣଙ୍କୁ ମାରିବାପାଇଁ କଂସ, ପୂତନାଠାରୁ ଆରମ୍ଭ କରି କେଶୀ ପର୍ଯ୍ୟନ୍ତ ଅନେକ ଅସୁର ପଠାଇଥିଲା । କୃଷ୍ଣଙ୍କ ପାଖରୁ ବଞ୍ଚିକରି କେହି ଫେରି ନାହାନ୍ତି । (ଅଣହେଳା) ଅବହେଳା ଆପଣେ] ନଷ୍ଟ ହେଲେ ॥୧୫॥

ଚନ୍ଦ୍ରେ ଇତି । (ଚନ୍ଦ୍ରେ) ଶ୍ରୀକୃଷ୍ଣଙ୍କ ଦେହରେ (କୁଙ୍କୁମ) ଏକପ୍ରକାର ପଦାର୍ଥ ଅତ୍ୟନ୍ତ ସୁବାସ ଦ୍ରବ୍ୟମାନ ॥୧୬॥

ଅନ ଇତି । [କ୍ଷୀର] ସ୍ତନ୍ୟ (ଅବର କାଳକୁ) ବୃଦ୍ଧ ସମୟକୁ ॥୧୭॥

କୋଇଲି ଲୋ, ଦଉଡ଼ିରେ ବାନ୍ଧିଲି ପୁତ୍ରଙ୍କୁ ।
ଦାମୋଦର ନାମେ ଗଲେ ମଥୁରା-ପୁରକୁ ।
ଲୋ, କୋଇଲି ୧୮ ।

କୋଇଲି ଲୋ, ଧନ୍ୟ ସେହୁ ଦଇବକୀ ନାରୀ ।
ଧର୍ମ ଅଳ୍ପ ଦୂର, ଗୋଷ୍ଠି ହୋଇଲା ତାହାର ॥
ଲୋ, କୋଇଲି । ୧୯ ।

---

ଦଉଡ଼ିରେ ଇତି । (ଦଉଡ଼ିରେ) ଦୌଡଦ୍ୱାରା, ଗଦ୍ୟରେ ଦୌଡ଼ି, (ଦାମୋଦର) ଶ୍ରୀକୃଷ୍ଣ. ପୌରାଣିକବାର୍ତ୍ତା—ଯଶୋଦା, ଗୋପପୁରରେ ଘର ଦୁଗ୍ଧ ପ୍ରଭୃତି ଅପହରଣାଦି କାର୍ଯ୍ୟରୁ ନିବର୍ତ୍ତାଇବା ପାଇଁ ଶ୍ରୀକୃଷ୍ଣଙ୍କୁ ଦାମ ଅର୍ଥାତ୍ ଦୌଡରେ ତାଙ୍କ ଉଦର ବା ପେଟରୁ ବାନ୍ଧିଥିଲେ, ସେହି ଦିନରୁ କୃଷ୍ଣଙ୍କ ନାମ ଦାମୋଦର ନାମରେ ପରିଚିତ । ଥରେ କୃଷ୍ଣ ଯଶୋଦାଙ୍କ ସହିତ ଦୁଧ ଦହି ଖାଇବା ପାଇଁ ଜିଦ କଲାବେଳେ ସେ ଦହି ମୋହୁ ? ଚୁଲ୍ଲୀ ଉପରେ ବସିଥିବା ଦୁଧହାଣ୍ଡି ଉତୁରିବାରୁ ବାହାରିଗଲେ । ସେତେବେଳେ କୃଷ୍ଣ ଦହି କୌଠରେ ପଥର ପକାଇ ଦେବାରୁ କୌଠର ଦହି ନଷ୍ଟ ହୋଇଗଲା । ତାହା ଦେଖି ପୁତ୍ରର ଶାସନା ଉଦ୍ଦେଶ୍ୟରେ ଘରପାଖରେ ଥିବା ଏକ ଯାଆଁଳା ଅର୍ଜୁନ ଗଛରେ ଦୌଡ଼ିରେ ବାନ୍ଧି ଦେଲେ । ପୂର୍ବେ ନାରଦଙ୍କ ଶାପରେ କୁବେରଙ୍କର ଦୁଇ ପୁଅ ନଳକୁବର ଓ ମଣିଗ୍ରୀବ ଯାଆଁଳା ଅର୍ଜୁନ ବୃକ୍ଷ ସ୍ୱରୂପରେ ସେଠାରେ ଥିଲେ କୃଷ୍ଣ ରଜ୍ଜୁ ହୋଇ ସେ ଗଛ ଦୁଇଟାକୁ ଉପାଡ଼ି ଦେବାରୁ ନଳ କୁବର ଓ ମଣିଗ୍ରୀବ ଶାପମୁକ୍ତ ହୋଇ ଯକ୍ଷ ଦେହରେ ଓଳଗ୍ଗା ପୂର୍ବକ ପ୍ରସ୍ଥାନ କରିଥିଲେ । ୧୮ ।

ଧନ୍ୟ ଇତି । ( ଦଇବକୀ ) ଦେବକୀ, ପଦ୍ୟର ଭାଷା । ଗୀତରେ, ନାମ ବାଚକ ଶବ୍ଦମାନଙ୍କର ଏପରି ବିଲକ୍ଷଣ ପ୍ରୟୋଗ ଦେଖି ଅନେକ ଧୁରନ୍ଧର ପଣ୍ଡିତ ଗୀତ ପଢ଼ିବାକୁ ସାମୟିକ ବାଧ୍ୟହେବ ହୁଅନ୍ତି । ୧୯ ।

କୋଇଲି ଲୋ, ନ ଶୋଭଇ ଗୋପପୁର ମୋର
ନାରାୟଣ ଗଲେ ଚଳି ମଥୁରା ନଗର ॥
ଲୋ, କୋଇଲି । ୨୦ ।

କୋଇଲି ଲୋ, ପରମ ପୁ—ରୁଷ ମୋ ମାଧୋଉ ।
ପବଶ ମୁଁ ଦେଉଥିଲି କୃଷ୍ଣ ମୁଖ ଚାହିଁ ॥
ଲୋ, କୋଇଲି । ୨୧ ।

କୋଇଲି ଲୋ, ଫଳବାକୁ ନାହିଁ ମୋର ଅଣ ।
ଫଳବାର ଫଳଗଲା ବସୁଦେବ ପାଣ ॥
ଲୋ, କୋଇଲି । ୨୨ ।

କୋଇଲି ଲୋ, ବିନ୍ଧୁଚ ସ—ହୁଲି ତାଙ୍କ ଅଳ ।
ବଡ଼ାଇ ଶରଧା ଭାଙ୍ଗି ଗଲେ ବନମାଳୀ ॥
ଲୋ, କୋଇଲି । ୨୩ ।

---

ନଶୋଭଇ ଇତ । (ଗୋପପୁର) ଗୋପାଳମାନଙ୍କ ଅବାସ ସ୍ଥଳ ବୃନ୍ଦାବନ ( ନାରାୟଣ ) ଭଗବାନ୍ ଶ୍ରୀକୃଷ୍ଣ, ନାର ଅର୍ଥାତ୍ ଜଳ, ଅୟନ ଅର୍ଥାତ୍ ଅଶ୍ରୟ ହୋଇଥିବା ବୋଲି ନାରାୟଣ ନାମ ପ୍ରସିଦ୍ଧ ସମୁଦ୍ର ଶାୟୀ କଥାରୁ ସୂଚିତ । ୨୦ ।

ପରମ ଇତ ।( ମାଧୋଉ ) ଶ୍ରୀକୃଷ୍ଣଙ୍କୁ ଯଶୋଦା ସ୍ନେହରେ ମାଧୋଉ ବୋଲି ଡାକନ୍ତି, ଏହା ମାଧବ ଶବ୍ଦରୁ ଜାତ । ୨୧ ।

ଫଳବାକୁ ଇତ ( ଅଣ ) ଅଣ୍ଡା ( ବସୁଦେବ ପାଣ ) ଦେବକୀଙ୍କ ସ୍ୱାମି ନନ୍ଦଙ୍କୁ ।୨୨।

ବନ୍ଧୁର ଇତ [ଅଳ] ଳଲାଟ ( ବଡ଼ାଇ ) ବଡ଼ପଣିଆ ( ଶରଧା ) ଶ୍ରଦ୍ଧା ବା ସ୍ନେହ (ବନମାଳୀ) ଶ୍ରୀକୃଷ୍ଣ । ୨୩ ।

କୋଇଲି ଲୋ, ଭଣ୍ଡି ମୋତେ ଗଲେ ବେନି ଗୋପ ।
ଭାଇ ତାଙ୍କ ବଳରାମ ନଇଲେ ବେଢ଼ାପ ॥
ଲୋ, କୋଇଲି । ୧୪ ।

କୋଇଲି ଲୋ, ମଥୁରାକୁ ଯିବଇ ମୁଁ ଧାଇଁ ।
ମାଧବ ମଧୁସୂଦନ ଆଣିବ କଢାଇ ॥
ଲୋ, କୋଇଲି । ୧୫ ।

କୋଇଲି ଲୋ, ଯିବେ ଯେ ଆ—ସିବେ ବୋଲି ଗଲେ
ଜଗତ ଜୀବନ ପ୍ରଭୁ ବେଢ଼ାପ ନଇଲେ ॥
ଲୋ, କୋଇଲି । ୧୬ ।

କୋଇଲି ଲୋ, ରତ୍ନ ବସ୍ତ୍ର ଅଲଙ୍କାର ମାନ ।
ରାମ କୃଷ୍ଣ ଙ୍କ ଅଙ୍ଗରୁ ଦିଶେ ଶୋଭାବନ ।
ଲୋ, କୋଇଲି । ୧୭ ।

---

ଭଣ୍ଡି ଇତି । (ଭଣ୍ଡି) ଠକ (ଭାଇ ତାଙ୍କ ବଳରାମ) କୃଷ୍ଣଙ୍କ ଜ୍ୟେଷ୍ଠ ଭାଇ ବଳରାମ । ୧୪ ।

ମଧୁସୂଦନ ଇତି । (ମାଧବ ମଧୁସୂଦନ) ରାଧାକାନ୍ତ ଶ୍ରୀକୃଷ୍ଣ, ମା—ଲକ୍ଷ୍ମୀ; ଧବ—ପତି, ଲକ୍ଷ୍ମୀପତି ହୋଇଥିବାରୁ ତାଙ୍କର ନାମ ମାଧବ । ମଧୁ ନାମକ ଦୈତ୍ୟଙ୍କୁ ସୂଦନ ଅର୍ଥାତ୍ ବିନାଶ କରିଥିବାରୁ ମଧୁସୂଦନ ନାମ ହୋଇଅଛି ॥ ୧୫ ।

ଯିବେ ଇତି । (ଜଗତ ଜୀବନ ପ୍ରଭୁ) ସମସ୍ତଙ୍କର ପ୍ରାଣ ସ୍ୱରୂପ ଶ୍ରୀକୃଷ୍ଣ । ୧୬ ।

ରତ୍ନ ଇତି । (ରତ୍ନ) ନବରତ୍ନ—ହୀରା, ନୀଳା, ମରକତ, ମୋତି, ମାଣିକ୍ୟ, ବିଦ୍ରୁମ, ବୈଦୂର୍ଯ୍ୟ, ଗୋମେଦ, ପଦ୍ମରାଗ, ପ୍ରବାଳ । [ଶ୍ରୀଅଙ୍ଗରୁ] ଦେହରୁ (ଶୋଭାବନ) ସୁନ୍ଦର । ୧୭ ।

କୋଇଲି ଲୋ, ଲକ୍ଷ୍ମୀବନ୍ତ ଅଟେ ନାରାୟଣ ।
ଲିଳବରେ ନାମ ଦେଲେ ସେ ଗର୍ଗ ବ୍ରାହ୍ମଣ ॥ *
ଲୋ, କୋଇଲି । ୨୮ ।

କୋଇଲି ଲୋ; ବୃନ୍ଦାବନ ନ ଶୋଭଇ ମୋର ।
ବସ୍ତା ବଏ ଚସ୍ତଇବ ଯମୁନାର ତୀର ॥
ଲୋ, କୋଇଲି । ୨୯ ।

କୋଇଲି ଲୋ, ଶ୍ରୀମନ୍ତ ପୁ—ରୁଷ ମୋ ମାଧୋଇ ।
ଶୀଘ୍ରଙ୍ଗ ଗଲା ଦନ୍ତ ନଦ ହେଲେ ବାଇ ॥
ଲୋ, କୋଇଲି । ୩୦ ।

---

ଲକ୍ଷ୍ମୀବନ୍ତ ଅର୍ଥ । (ଲଳଚରେ) ଅର୍ଥ ସ୍ୱାର୍ଥ୍ୟରେ (ଗର୍ଗ ବ୍ରାହ୍ମଣ) ଯଦୁବଂଶର ପୁରୋହିତ । କୃଷ୍ଣଙ୍କର ନାମକରଣ ସମୟ ଉପସ୍ଥିତ ହେବାରୁ ବସୁଦେବ, ଗୁପ୍ତଭାବରେ ଗର୍ଗଙ୍କୁ ଡକାଇ ଗୋକୁଳରେ କୃଷ୍ଣଙ୍କର ନାମକରଣ କରିବାକୁ ଆଦେଶ ଦେଇ ଥିଲେ । ପ୍ରକାଶ୍ୟରେ କଲେ କଂସ କୃଷ୍ଣଙ୍କୁ ଯାଦବ ବୋଲି ବୁଝିପାରି ଅନିଷ୍ଟ କରିବ ଏ ଭୟରେ ଗର୍ଗ, ଗୁପ୍ତରେ ନାମକରଣ କରି କୃଷ୍ଣଙ୍କ ମହିମା ନନ୍ଦଙ୍କୁ ବୁଝାଇ ଦେଇଥିଲେ । ୨୮ ।

ବୃନ୍ଦାବନ ଅର୍ଥ । [ ବସ୍ତା ] ଗୀତ ବାକ୍ୟ (ଯମୁନା ତୀର) ଯମୁନା ନଦୀର କୂଳ । ୨୯ ।

ଶ୍ରୀମନ୍ତ ଅର୍ଥ । (ଶ୍ରୀମନ୍ତ) ଲକ୍ଷ୍ମୀବନ୍ତ ଅର୍ଥାତ୍ ସୁନ୍ଦର (ଶୀଘ୍ରଙ୍ଗ) ଶୀଘ୍ର (ବାଇ) ବାତୁଳ । ୩୦ ।

---

*—ପାଠାନ୍ତର – ଲଗ୍ନରେ ନାମ ଦେଲେ ଗର୍ଗ ବ୍ରାହ୍ମଣ । ।

କୋଇଲି ଲୋ, ଛନ୍ଦଣି ବ—ନ୍ଧଣି ଭୁଜଦଣ୍ଡ ।

କ୍ଷମା କର ଦୋଷ ମୋର ଭଣେ ମାରକଣ୍ଡ ॥ *

ଲୋ, କୋଇଲି । ୩୪ ।

---

ଛନ୍ଦଣି ଇତି । [ଛନ୍ଦଣି ବନ୍ଧଣି ଭୁଜଦଣ୍ଡ] ଅର୍ଥାତ୍ ହାତଯୋଡ଼ି କରି ଏହା ଗୋଟିଏ ସମାସବଦ୍ଧପଦ ଓ ମାର୍କଣ୍ଡର ବିଶେଷଣ, (ମାରକଣ୍ଡ) ଏହି କେଶବ କୋଇଲିର ରଚକ ମାର୍କଣ୍ଡ ଦାସ ଭଣେ ] କହେ, ପ୍ରଥମ ପୁରୁଷ ଏକବଚନ ବର୍ତ୍ତମାନ କ୍ରିୟା । ନାରାୟଣୀ ଟୀକା ସମାପ୍ତ ॥ ୩୪ ॥

---

*—ପାଠାନ୍ତର = କେ ଲଭ ସେ ଛନ୍ଦଣି ବନ୍ଧଣି ଭୁଜଦଣ୍ଡ ।

Printed by A. C Chakravarty, O. P. Works, Puri, 1926

# ଥରେ ପଢ଼ନ୍ତୁ ।

ନିମ୍ନଲିଖିତ ଠିକଣାରେ ଅଗ୍ରିମ ମିଳିଲେ ପୁସ୍ତକ ପଠାଯାଏ । ପ୍ରତି ୧୨ ଖଣ୍ଡରେ ୧ ଖଣ୍ଡ ଉପହାର ଦିଆଯାଏ

## ୧ । ଭାଷାଶୁଦ୍ଧି ଚନ୍ଦ୍ରିକା ୦।୯

ପ୍ରତି ଓଡ଼ିଆ ଲୋକଙ୍କୁ ଲୋଡ଼ା । ଏଥିରେ ଦୂରଣ ବାଚକ ଶବ୍ଦ, ବ୍ରହ୍ମର୍ଷି, ବଜାରର ଭାଷା, ଚନ୍ଦ୍ରମାନଙ୍କର ଓଡ଼ିଆ ନାମ ଜ୍ୟାମିତିକ ଚନ୍ଦ, ଇନ୍ ଭାଗାନ୍ତ ଶବ୍ଦର ପ୍ରୟୋଗ, ଅଶୁଦ୍ଧି ସଂଶୋଧନ, ଏକରୁ ପରାର୍ଦ୍ଧ ପର୍ଯ୍ୟନ୍ତ ସଂଖ୍ୟାର ଭାଷା; କରଣୀ ଅଙ୍କର ପ୍ରକୃତ ସ୍ଥାନ ପାଇଅଛି ।

## ୨ । ଗଳ୍ପ ନିସ୍ତାରଣୀ ଓ ପଞ୍ଚରତ୍ନ ୦।୨

ଏହି ଉଭୟ ଗ୍ରନ୍ଥରେ ପ୍ରସିଦ୍ଧ ଉକ୍ତିଙ୍କର ୧୩ ଗୋଟି ପ୍ରବନ୍ଧ ଅଛି । ଗଦ୍ୟଗୁଡ଼ିକ ଶିଶୁମାନଙ୍କ ପାଠୋପଯୋଗୀ ହୋଇଅଛି ।

## ୩ । ସଟୀକ କେଶବ କୋଇଲି ୦ ୦/

## ୪ । ଓଡ଼ିଆ ହିନ୍ଦି ଶିକ୍ଷା ୦ ୦।/

ହିନ୍ଦି ଶିଖିବାକୁ ଓଡ଼ିଆଙ୍କର ଏ ଅଦ୍ୱିତୀୟ ପୁସ୍ତକ ।

## ୫ । ପ୍ରାରମ୍ଭ ଚିକିତ୍ସା ( First Aid ) ଯନ୍ତ୍ରସ୍ଥ

ଓଡ଼ିଆରେ ଡାକ୍ତରି ପୁସ୍ତକ

ଠିକଣା ।—ପଣ୍ଡିତ ନାରାୟଣ ଶିରୋମଣି
ସୁରଙ୍ଗି-ହାଇସ୍କୁଲ; ଇଛାପୁର, ଗଞ୍ଜାମ ।